ବିଜ୍ଞାନ ଯଦି ଗୋଟିଏ ବିରାଟ ଗଛ ହୁଏ,
ତେବେ ପ୍ରଶ୍ନଟିଏ ହେବ ତାର ମଞ୍ଜି
ଓ କୌତୁହଳ ହେବ ତା'ର
ଖାଦ୍ୟସାର ।

ଜଣେ ରାଜା ଥିଲେ । ତାଙ୍କର ଗୋଟିଏ ବୋଲି ପୁଅ ଥିଲା । ରାଜମହଲରେ ଅମାପ ଧନ ରହିଥିଲା, ଦାସଦାସୀ ଅନେକ ଥିଲେ, କେଉଁଠି କିଛି ଅଭାବ ନ ଥିଲା । ଏସବୁ ସତ୍ୱେ ରାଜା ବେଳେ ବେଳେ ଉଦାସ ରହୁଥିଲେ । ଅସଲ କାରଣ ହେଉଛି ରାଜକୁମାରଙ୍କୁ ରାଜା ବହୁତ ଭଲ ପାଉଥିଲେ । ସେ ବେଳେ ବେଳେ ବହୁତ ଅଜବ ଅଜବ ପ୍ରଶ୍ନ ସବୁ କରୁଥିଲା । ବେଳେ ବେଳେ ପକ୍ଷୀ ଉପରେ ଚଢ଼େଇ କେମିତି ଉଡୁଛି, ବେଳେ ବେଳେ ଉପରୁ ସବୁ ଜିନିଷ କାହିଁକି ତଳକୁ ପଡ଼େ ଇତ୍ୟାଦି । ରାଜାଙ୍କୁ ଏସବୁ ପ୍ରଶ୍ନର ଉତ୍ତର ଜଣା ନଥିଲା । ତେଣୁ ସେ ବହୁତ ବ୍ୟସ୍ତ ହୋଇ ପଡୁଥିଲେ, ବେଳେ ବେଳେ ବିରକ୍ତ ମଧ୍ୟ ହୋଇ ଯାଉଥିଲେ । ତେଣୁ ରାଜକୁମାର ଭୟରେ ରାଜାଙ୍କ-ଠାରୁ ଦୂରରେ ରହିବାକୁ ଆରମ୍ଭ କଲେ । ରାଜା ଏ ସବୁ ପ୍ରଶ୍ନର ଉତ୍ତର ଖୋଜି ଖୋଜି ନୟାନ୍ତ ।

ଦିନେ ତାଙ୍କର ସବୁଠାରୁ ବୁଦ୍ଧିଆ ମନ୍ତ୍ରୀଙ୍କୁ ଡାକି ରାଜା କହିଲେ "ମନ୍ତ୍ରୀ, ରାଜକୁମାର ଅନେକ ପ୍ରଶ୍ନ ପଚାରୁଛି, ଯାହାରକି ଉତ୍ତର ମୋ ପାଖରେ ନାହିଁ । ମୋ ମନରେ ମଧ୍ୟ ଅନେକ ପ୍ରଶ୍ନ ଉଠୁଛି । ଶୁଣୁଛି ବିଜ୍ଞାନ ଜରିଆରେ ଏସବୁ ପ୍ରଶ୍ନର ଉତ୍ତର ଦିଆ ଯାଇ ପାରିବ । ଆପଣତ ବୁଦ୍ଧିମାନ, ପୁଣି ପଣ୍ଡିତ, ମତେ କହନ୍ତୁ ଯେ "ବିଜ୍ଞାନ କ'ଣ ?"

ରାଜାଙ୍କ କଥା ଶୁଣି ମନ୍ତ୍ରୀ ମହା ଅଡୁଆରେ ପଡ଼ିଗଲେ । ଅବଶ୍ୟ ସେ କିଛି ପରିମାଣରେ ବିଜ୍ଞାନ କ'ଣ ଜାଣିଥିଲେ । ତଥାପି "ବିଜ୍ଞାନ କ'ଣ ?" ଏ ବିଷୟରେ କେବେ ଚିନ୍ତା କରିନଥିଲେ । ଆହୁରି ମଧ୍ୟ ଗୋଟେ ସମସ୍ୟା ହେଉଛି ରାଜାଙ୍କ ପରି ବିଜ୍ଞାନ ନ ଜାଣିଥିବା ଲୋକଙ୍କୁ କିପରି ବୁଝେଇବ ଯେ "ବିଜ୍ଞାନ କ'ଣ ?"

ଗୋଟେ ସପ୍ତାହ ଧରି ମନ୍ତ୍ରୀ ଗଭୀର ଚିନ୍ତା କଲେ । ରାଜାଙ୍କୁ କହିଲେ, "ମହାରାଜ, ଆପଣଙ୍କ ପ୍ରଶ୍ନ ଅତି ଜଟିଳ । ଏହାର ଉତ୍ତର ଜାଣିବା ଆଗରୁ ଦେଖିବା ଯେ ଆପଣଙ୍କ ପ୍ରଶ୍ନ ଓ ରାଜକୁମାରଙ୍କ ପ୍ରଶ୍ନରେ କ'ଣ ସମାନ ? ଏସବୁ ପ୍ରଶ୍ନର ସମ୍ବନ୍ଧ ସାରା ଦୁନିଆ ସହିତ ରହିଛି, ଯାହାକି ଦୁନିଆକୁ ବୁଝିବାରେ ଆଗ୍ରହରୁ ସୃଷ୍ଟି ହୁଏ । ମହାରାଜ, ବିଜ୍ଞାନର ଆରମ୍ଭ ଏଇ ଜିଜ୍ଞାସାରୁ ହୁଏ । ଏହି ଜିଜ୍ଞାସା କୌଣସି ପଦାର୍ଥକୁ ଛୁଇଁକରି, ଶୁଙ୍ଘିକି, ଚାଖିକି ବା ଶୁଣିକି ସୃଷ୍ଟି ହୁଏ । ଏହି ଜିଜ୍ଞାସା ଏକ ପ୍ରଶ୍ନ ଉଠାଏ, ଯାହାକୁ କି ବିଜ୍ଞାନ ସମାଧାନ କରିବାକୁ ଚେଷ୍ଟା କରେ । ଏହିପରି ବିଜ୍ଞାନ ଆମ ଚାରିପଟେ ବ୍ୟାପ୍ତଥିବା ଦୁନିଆକୁ ବୁଝିବାରେ ସାହାଯ୍ୟ କରେ ।"

ରାଜା କହିଲେ "ମନ୍ତ୍ରୀ, ଇଏତ ଠିକ୍ କଥା, କିନ୍ତୁ ବିଜ୍ଞାନ ସମାଧାନ କେମିତି କରେ ?"

ମନ୍ତ୍ରୀ କହିଲେ "ଏ କଥା ଜାଣିବା ପାଇଁ ଆମକୁ ବୈଜ୍ଞାନିକମାନଙ୍କର କାର୍ଯ୍ୟ ପ୍ରଣାଳୀକୁ ଅନୁଧ୍ୟାନ କରିବାକୁ ପଡ଼ିବ । ପ୍ରଥମେ ସେ ନିରୀକ୍ଷଣ କରି କିଛି ତଥ୍ୟ ଏକାଠି କରନ୍ତି । ଏହି ତଥ୍ୟସବୁକୁ ଏକାଠି କରି ମନେ ମନେ ଏକ ଛବି ଗଢି ନିଅନ୍ତି । ଅନେକ ସମୟରେ ଯେଉଁ ତଥ୍ୟ ସଂଗ୍ରହ କରଯାଇଥାଏ, ତାହା ମନର ଛବି ପାଇଁ ଯଥେଷ୍ଟ ହୁଏନି । ତେଣୁ ସେ ପରୀକ୍ଷା କରେ ଓ ଏହି ସମସ୍ୟା ବିଷୟରେ ଅଧିକ ତଥ୍ୟର ସନ୍ଧାନ କରେ । ଏହା ସେ ପର୍ଯ୍ୟନ୍ତ ଚାଲେ ଯେ ପର୍ଯ୍ୟନ୍ତ କି ଗୋଟିଏ ଠିକ୍ ଉତ୍ତର ନ ମିଳି ଥାଏ ।"

ରାଜା କହିଲେ "ମୁଁ ଆପଣଙ୍କ କଥା ଠିକ୍‌ରେ ବୁଝି ପାରିଲିନି । ଆପଣ ଗୋଟିଏ ସିଧା ସାଧା ଉଦାହରଣ ଦେଇ ବୁଝେଇ ଦିଅନ୍ତୁ ।"

ମନ୍ତ୍ରୀ କହିଲେ "ଦେଖନ୍ତୁ ମହାରାଜ, ରାଜକୁମାରଙ୍କର ଗୋଟିଏ ପ୍ରଶ୍ନ ଥିଲା ଯେ ସବୁ ଜିନିଷ କାହିଁକି ତଳକୁ ପଡ଼େ । ଏହି ପ୍ରଶ୍ନର ମୂଳ ହେଉଛି, ଆମେ ସବୁ ବେଳେ ଦେଖୁ ଯେ ସବୁ ଜିନିଷ ତଳେ ହିଁ ପଡ଼େ । କ'ଣ ଏହା ସବୁ ଜିନିଷ ଓ ସବୁ ଜାଗା ପାଇଁ ଠିକ୍ ? ଏହା ଜାଣିବା ପାଇଁ ବିଭିନ୍ନ ଜିନିଷ ନେଇ ବିଭିନ୍ନ ସ୍ଥାନରେ ପରୀକ୍ଷା କରିବା ଦରକାର । ଆମେ ଏମିତି କଲେ ଦେଖିବା ଯେ ପଥର, ପଇସା, ଛୁଞ୍ଚି, କନା, କାଗଜହାଲୁକା ହେଉ ବା ଭରୀ ହେଉ, ଜିନିଷ ତଳେହିଁ ପଡ଼ିବ । ଅନେକ ବର୍ଷ ତଳେ ଜଣେ ବୈଜ୍ଞାନିକ ଏହାର ଉତ୍ତର ଦେଇଥିଲେ ।"

ରାଜାଙ୍କର ଆଗ୍ରହ ଅନେକ ବଢି ଯାଇଥିଲା । ସେ ପଚ୍ଚରିଲେ "ଉତ୍ତରଟା କ'ଣ ?"

ମନ୍ତ୍ରୀ କହିଲେ "ଉତ୍ତର ତ ସିଧା କଥା । ଜିନିଷ ତଳେ ପଡ଼େ କାରଣ ପୃଥିବୀ ତାକୁ ତଳକୁ ଟାଣୁଛି ।"

ରାଜା ଖୁବ୍ ଖୁସି ହୋଇ କହିଲେ "ଆରେ ଏ ତ ସିଧା କଥା । କେଜାଣି କେମିତି ମୁଁ ଭବି ପାରି ନଥିଲି !"

ମନ୍ତ୍ରୀ କହିଲେ "ମହାରାଜ, ଏପରି ଅନେକ ଉତ୍ତର ବହୁତ ସାଧାରଣ ଲାଗେ । କିନ୍ତୁ ଉତ୍ତର ଖୋଜିବା ଏତେ ସହଜ ନୁହେଁ । ପକ୍କା ଉତ୍ତର ପାଇବା ଆଗରୁ ବହୁତ ପରୀକ୍ଷା ନିରୀକ୍ଷା କରିବା ପାଇଁ ହୁଏ । ବେଳେ ବେଳେ ବୈଜ୍ଞାନିକଙ୍କ ଜୀବନ ମଧ୍ୟ ବିତି ଯାଏ ଉତ୍ତର ଖୋଜି ଖୋଜି ।"

ଏବେ ରଜା ବିଜ୍ଞାନ ବିଷୟରେ କିଛି କିଛି ବୁଝିଲେଣି । ତେଣୁ ତାଙ୍କର ଆଗ୍ରହ ବହୁତ ବଢ଼ିଯାଇଥାଏ ।

ପରଦିନ ରଜା ମନ୍ତ୍ରୀଙ୍କୁ କହିଲେ "ଆପଣ ବିଜ୍ଞାନ ବିଷୟରେ ଯାହା କହିଲେ ମୁଁ ବହୁତ ଖୁସି, ଯଦି ଆପଣ କିଛି ପରୀକ୍ଷା ଦ୍ୱାରା ବୁଝେଇ ପାରିବେ ତେବେ ମୋର ସନ୍ଦେହ ପୁରା ଦୂର ହୋଇଯା'ନ୍ତା । ମୁଁ ଚାହୁଁଛି ଏସବୁ ପରୀକ୍ଷାରେ ନିଜେ ଭାଗ ନିଅନ୍ତି !"

ଏବେ ମନ୍ତ୍ରୀ ଦେଖିଲେ ସମସ୍ୟା ବଡ଼ ଜଟିଳ, କିନ୍ତୁ ସେ ଜଣେ ବହୁତ ବୁଦ୍ଧିମାନ ମନ୍ତ୍ରୀ ଥିଲେ । ତେଣୁ ୨-୩ ଦିନ ପରେ ଗୋଟେ ହାତୀ ଓ ତିନିଜଣ ଅନ୍ଧଙ୍କୁ ନେଇ ଆସିଲେ । ଦରବାରରେ ରଜା, ରାଜକୁମାର ଓ ମହଲବାସୀ ସମସ୍ତେ ଆସି ଜମା ହେଲେ ।

ମନ୍ତ୍ରୀ କହିଲେ "ମହାରାଜ, ପରୀକ୍ଷା ଆରମ୍ଭ କରାଯିବ ।" ରଜା କହିଲେ "ମନ୍ତ୍ରୀ କ'ଣ ଥଟ୍ଟା ଖେଳୁଛ ? ବିଜ୍ଞାନ ସହ ହାତୀ ଓ ଅନ୍ଧଙ୍କର କ'ଣ ସମ୍ପର୍କ ?"

ମନ୍ତ୍ରୀ କହିଲେ "ମହାରାଜ, ମୁଁ ଥଟ୍ଟା କରୁନି । ଅନ୍ଧଙ୍କୁ ଜଣାନାହିଁ ଯେ ଏଠି ହାତୀ ଅଛି । ଦେଖନ୍ତୁ ପରୀକ୍ଷା କିପରି ହେବ ।"

ପ୍ରଥମ ଅନ୍ଧ ହାତୀର ଲାଞ୍ଜକୁ ଛୁଇଁ କହିଲା ଯେ ଏହା ଦଉଡ଼ି ପରି ଏକ ଜିନିଷ । ଦ୍ୱିତୀୟ ଅନ୍ଧ ହାତୀର ଶୁଣ୍ଢକୁ ଛୁଇଁ କହିଲା ଯେ ଏହା ସାପ ପରି, ତୃତୀୟ ଅନ୍ଧ ହାତୀର ଗୋଡ଼ ଛୁଇଁ କହିଲା ଯେ ଏହା ଗଛର ଗଣ୍ଡି ପରି ।

ଏମାନଙ୍କ କଥା ଶୁଣି ସମସ୍ତେ ହସିଲେ ଓ ଅନ୍ଧମାନେ ହସ ଶୁଣି ଟିକେ ଦବିଗଲେ । ମନ୍ତ୍ରୀ ସମସ୍ତଙ୍କୁ ଚୁପ କରାଇଲେ । ସମସ୍ତେ ଅନେଇ ରହିଲେ ଯେ ମନ୍ତ୍ରୀ କ'ଣ କରୁଛନ୍ତି ଦେଖିବା ପାଇଁ ।

ମନ୍ତ୍ରୀ କହିଲେ "ଆମେ ଦେଖିଲେ ଯେ ଗୋଟିଏ ଜନ୍ତୁ ବିଷୟରେ କିପରି ଅଲଗା ଅଲଗା, ପୁଣି ଭୁଲଭାଲ ତଥ୍ୟ କହିଲେ । ଏବେ ଆମେ ସେମାନଙ୍କୁ ମିଳିମିଶି ପରୀକ୍ଷା କରିବା ପାଇଁ କହିବା" ଓ ମନ୍ତ୍ରୀ ସେମାନଙ୍କୁ ଆଦେଶ ଦେଲେ ।

ଅନ୍ଧମାନେ ପରସ୍ପର ସହ ଆଲୋଚନା କଲେ ଯେ ଏଇଟା କିପରି ଜିନିଷ ଯାହାକି କିଛି ପରିମାଣରେ ଦଉଡ଼ି, ସାପ ଓ ଗଛ ଗଣ୍ଡି ପରି । ଅନେକ ସମୟ ଆଲୋଚନା କଲାପରେ ମଧ୍ୟ କିଛି ଫଇସଲା କରି ପାରିଲେନି । ତେଣୁ ସେମାନେ ଆଉଥରେ ଛୁଇଁବା ପାଇଁ ଠିକ୍ କଲେ । ଏଥର ସେମାନେ ଠିକ୍ କଲେ ଯେ କେବଳ ନ ଛୁଇଁ କି ତା' ବିଷୟରେ ଖୋଳତାଡ଼ ମଧ୍ୟ କରିବେ । ଅନେକ ସମୟ ପର୍ଯ୍ୟନ୍ତ ଖୋଳତାଡ଼ କରୁଥାନ୍ତି ଓ ନିଜ ନିଜ ଅନୁଭୂତି ଅନ୍ୟଙ୍କୁ ଶୁଣାଉଥା'ନ୍ତି ।

ପ୍ରଥମ ଅନ୍ଧ କହିଲା "ସାପ ପରି ଯେଉଁ ଜିନିଷଟା ତାହା କ୍ରମେ ଉପରକୁ ଯାଉଛି ଓ କୌଣସି ବଡ଼ ମୁଣ୍ଡ ପରି ଜିନିଷରେ ଲୀନ ହୋଇଗଲା ।" ହଠାତ୍ ହାତ କାଢି ଆଣି କହିଲା "ଆରେ ଇଏତ ପାଟି ପରି, ରକ୍ଷା ହୋଇଛି ହାତ କାଢି ଆଣିଛି, ନ ହେଲେ କାମୁଡ଼ି ଦେଇଥାନ୍ତା । ଏବେ ବୁଝୁଛି ଏଇ ସାପ ପରି ଜିନିଷଟା ଗୋଟେ ନାକ ହୋଇପାରେ ।

ଦ୍ୱିତୀୟ ଅନ୍ଧ କହିଲା "ଦଉଡ଼ି ପରି ଜିନିଷଟା ଅତି କିଛି ବଡ଼ ନୁହେଁ । ଏହା ଗୋଟିଏ ବଡ଼ ଭାରୀ ଶରୀର ସହ ଲାଗିଛି, ଏତେ ବଡ଼ ଯେ ଦୁଇ ହାତରେ ଧରି ହେଉନି । ମୁଁ ବୁଝି ପାରୁନି ଏଇ ଦଉଡ଼ି ପରି ଜିନିଷଟା କ'ଣ ? "

ତୃତୀୟ ଅନ୍ଧ କହିଲା "ତମମାନଙ୍କ କଥା ଶୁଣି ଶୁଣି ମୁଁ ଯାହା ଖୋଳତାଡ଼ କରି ଜାଣୁଛି ଏହା ଗଛର ଗଣ୍ଡି ହୋଇ ନ ପାରେ, କାରଣ ଏଥିରେ ଡାଳ ପତ୍ର କିଛି ନାହିଁ । ଉପରେ ଗୋଟିଏ ନରମ ଦେହ ସହ ଲାଗିଛି । ଆରେ, ଏଇଟାତ ମନକୁ ମନ ଉଠିକି ଚାଲିବା ପାଇଁ ଲାଗିଲାଣି । ଆଚ୍ଛା ! ଏବେ ମୁଁ ବୁଝିଲି, ଏଇଟା ଗୋଟେ ଗୋଡ଼ ।"

ତାପରେ ତିନିଜଣ ଯାକ ମିଶି ବିଚାର କଲେ । ମନ୍ତ୍ରୀ ତାଙ୍କର ଖୋଳତାଡ଼ ବିଷୟରେ ପଚାରିଲେ, ସେମାନେ କହିଲେ "ମହାରାଜ, ଏବେ ଏବେ ଯେଉଁ ଜିନିଷକୁ ଆମେ ପରୀକ୍ଷା କଲୁ, ବୋଧହୁଏ ବହୁତ ବଡ଼ ଜନ୍ତୁ, ଯାହାରକି ନାକ ଏତେ ଲମ୍ବା ଯେ ମାଟି ଛୁଉଁଛି, ଗୋଡ଼ ଗୁଡ଼ିକ ବହୁତ ମୋଟା, ଦେହଟା ବହୁତ ବଡ଼, ଆମଠାରୁ ବହୁତ ଉଚ୍ଚା, ତେଣୁ ଆମେ ଉପର ଅଂଶ ପରୀକ୍ଷା କରି ପାରିଲୁ ନାହିଁ । ତା ପଛପଟେ ଦଉଡ଼ି ପରି କିଛି ଅଛି, ଏଇଟା ଲାଞ୍ଜ ହୋଇପାରେ, କିନ୍ତୁ ଆମେ ନିଶ୍ଚିତ ନୁହେଁ । ଆମେ ଅନ୍ଦାଜ କରି କହୁଛୁ ଯେ ଏହି ଜନ୍ତୁଟି ହାତୀ ବା ସେପରି କିଛି ଜନ୍ତୁ । ଆମେ ଜନ୍ମରୁ ଅନ୍ଧ । ତେଣୁ ହାତୀ ବିଷୟରେ ଯାହା ଶୁଣିଛୁ, ସେଇ ଅନୁସାରେ ହିଁ କେବଳ କହୁଛୁ ।"

ମନ୍ତ୍ରୀ କହିଲେ "ମହାରାଜ, ଏହିପରି ପରୀକ୍ଷା ଶେଷହେଲା । ମୁଁ ଆଶା କରୁଛି ଯେ ବିଜ୍ଞାନର ପ୍ରକ୍ରିୟା ସମ୍ବନ୍ଧରେ ଆପଣ ବେଶ୍ କିଛି ବୁଝି ପାରିଥିବେ ।"

ରଜାଙ୍କ ଚେହେରାରେ ସନ୍ତୋଷ ଓ ଉତ୍ସାହର ନୂଆ ଚମକ ଝଟକୁଥିଲା । ସେ କହିଲେ "ଆପଣ ଯେତେ ସରଳ ଭାବରେ ବିଜ୍ଞାନ ବିଷୟରେ ବୁଝେଇ ଦେଲେ, ପ୍ରକୃତରେ ତାହା ପ୍ରଶଂସାଯୋଗ୍ୟ । ତଥାପି ଆପଣ ଆମ ପାଇଁ ପରୀକ୍ଷା ଫଳ ବିଷୟରେ କିଛି କୁହନ୍ତୁ ।"

ମନ୍ତ୍ରୀ କହିଲେ "ଏହି ପରୀକ୍ଷାର ସାରମର୍ମ ଏହି ପ୍ରକାର । ଅନ୍ଧ ତିନିଜଣ ଠିକ୍ ବୈଜ୍ଞାନିକ ମାନଙ୍କ ପଦ୍ଧତି ଅନୁସରଣ କଲେ । ପ୍ରତ୍ୟେକ ଅନ୍ଧଙ୍କୁ ଯେତିକି ତଥ୍ୟ ମିଳୁଥିଲା, ତାକୁ ଏକାଠି କରି ମନରେ ଗୋଟିଏ ଛବି ପ୍ରସ୍ତୁତ କଲେ । ଯେହେତୁ ସେମାନେ ଅନ୍ଧ ଥିଲେ, ସେମାନଙ୍କର ପ୍ରମାଣ ସୀମିତ ଥିଲା । ତେଣୁ ତାଙ୍କର ମନର ଛବିଟି ଠିକ୍ ନ ଥିଲା । ଏହି ପରିସ୍ଥିତିରେ ସେମାନେ ନିଜ ନିଜର ଅନୁଭୂତିକୁ କାମରେ ଲଗାଇବା ପାଇଁ ଚେଷ୍ଟା କଲେ । ତା'ପରେ ସେମାନେ ନିଜ ପରୀକ୍ଷାର ଅଲଗା ଅଲଗା ସୂଚୀ ପ୍ରସ୍ତୁତ କଲେ । ପ୍ରତି ଅନ୍ଧ ହାତୀର କୌଣସି ଅଙ୍ଗକୁ ଠିକ୍ ଭାବରେ ପର୍ଯ୍ୟବେକ୍ଷଣ କଲେ । ପର୍ଯ୍ୟବେକ୍ଷଣର ପ୍ରତି ପଦକ୍ଷେପରେ ସେ ନିଜର ଅନୁଭୂତି ଅନ୍ୟମାନଙ୍କୁ ଶୁଣାଉ ଥିଲେ, ଓ ତା' ଉପରେ ସେମାନେ ଆଲୋଚନା କରୁଥିଲେ । ଫଳରେ ତା'ଙ୍କ ମନରେ ସେହି ଜନ୍ତୁର ଏକ ପ୍ରକୃତ ଛବି ସୃଷ୍ଟି ହୋଇ ପାରିଥିଲା । ଲୋକଙ୍କଠୁ ଶୁଣି ଶୁଣି ହାତୀର ଯେଉଁ ଛବି ତାଙ୍କ ମନରେ ଥିଲା ତାହା ଏବେ ପ୍ରମାଣିତ ହୋଇଗଲା । ପରୀକ୍ଷା ଦ୍ୱାରା ଅନ୍ଦାଜକୁ ପ୍ରମାଣିତ କରିବା ବିଜ୍ଞାନର ଏକ ପଦ୍ଧତି । ଏହାହିଁ ବିଜ୍ଞାନ ।

ଅଜ୍ଞାନ ସୃଷ୍ଟି ପାଇଁ

ସୃଷ୍ଟି ପାଇଁ "ସୃଜନୀକା"

ମୂଳ ହିନ୍ଦି ଲେଖା : ବିନୋଦ ରାଇନା
ଡି. ପି. ସିଂହ
ଏକଲବ୍ୟ, ମଧ୍ୟପ୍ରଦେଶ
ଅନୁବାଦ : ପୁଷ୍ପଶ୍ରୀ ପଟ୍ଟନାୟକ

ସୃଜନୀକା

କ୍ୱାଟର ନମ୍ବର—ସି. ଆର୍.—୧
ରିଜିଓନାଲ ମେଡିକାଲ ରିସର୍ଚ୍ଚ ସେଣ୍ଟର କ୍ୟାମ୍ପସ
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର—୭୫୧୦୦୫

ମୂଲ୍ୟ—ଏକଟଙ୍କା